


ଯମୁନାତୀରେ ଲଳିତା ଓ ରାଜହଂସ ।

Hansaduta

# ହଂସଦୂତ ।

---

…kradhara Acharya

ଶ୍ରୀ ଚକ୍ରଧର ଆଚାର୍ଯ୍ୟ ବି, ଏ;—ପ୍ରଣୀତ

ଏବଂ ପ୍ରକାଶିତ ।

ପ୍ରଥମ ସଂସ୍କରଣ ।

ଅରୁଣୋଦୟ ଯନ୍ତ୍ରାଳୟର ମେସିନ୍‌ଯନ୍ତ୍ରେ

ମୁଦ୍ରିତ ।

---

Printed by Nityananda Sahoo
at the Arunodaya Press
CUTTACK
1925

ମୂଲ୍ୟ ଟ ୦ ୶/ ତନଅଣା ।

25 % Extra

# ଉତ୍ସର୍ଗ ।

ପରମମାନନୀୟା ଶ୍ରୀଯୁକ୍ତା ହିନ୍ଦୋଳାଧୀଶ୍ୱରୀ ସ୍ୱର୍ଗୀୟା
ରତ୍ନପ୍ରଭା ଦେବୀଙ୍କ ଗୌରବାନ୍ୱିତ ନାମରେ
ଏହି କ୍ଷୁଦ୍ର 'ହଂସଦୂତ' ଖଣ୍ଡି ଲେଖକଙ୍କର
ଆନ୍ତରିକ ଭକ୍ତିର ନିଦର୍ଶନ ସ୍ୱରୂପ
ଉତ୍ସୃଷ୍ଟ ହେଲା ।

ବିନୀତ
ଶ୍ରୀ ଚନ୍ଦ୍ରଧର ଆଚାର୍ଯ୍ୟ
ନନ୍ଦପୁର ଶାସନ
ହିନ୍ଦୋଳ
୫-୬-୨୪

# ନିବେଦନ ।

କବିବର ରାଧାନାଥ ସଂସ୍କୃତ ହଂସଦୂତରୁ କତିପୟ ଶ୍ଳୋକ ଅନୁବାଦ କରିଥିଲେ । ସମ୍ପୂର୍ଣ୍ଣ କରିବାକୁ ତାଙ୍କୁ କାଳ ସହିଲା ନାହିଁ; ଏଣୁ ସେହି ଅନୁବାଦ ଅସମ୍ପୂର୍ଣ୍ଣ ରହିଲା । କାହିଁ ରାଧାନାଥ କାହିଁ ମୋପରି ଅଳ୍ପଧୀ-ସମ୍ପନ୍ନ ନଗଣ୍ୟ ବ୍ୟକ୍ତି ! ଯାହାହେଉ କବିଗୁରୁଙ୍କ ଆଶିଷକୁ ସମ୍ବଳ କରି ହଂସଦୂତ ଅନୁବାଦ କରିବାକୁ ପ୍ରୟାସୀ ହେଲି । ବିଜ୍ଞପାଠକମାନେ ଧୃଷ୍ଟତା ଏବଂ ତ୍ରୁଟି ମାର୍ଜନା କରିବେ । ଭକ୍ତିଭାଜନ ପୂଜ୍ୟପାଦ ପଣ୍ଡିତ ଶ୍ରୀଯୁକ୍ତ ରାମଚନ୍ଦ୍ର ନନ୍ଦ ଏହା ଆମୂଳ ପାଠକରି ସର୍ବ-ସାଧାରଣରେ ପ୍ରକାଶ କରିବାକୁ ଉତ୍ସାହିତ କରିଥିବା-ହେତୁ ତାଙ୍କ ନିକଟରେ କୃତଜ୍ଞତାପାଶରେ ଆବଦ୍ଧ ରହିଲି । ଇତି ।

ବଶଂବଦ
ଶ୍ରୀ ଚକ୍ରଧର ଆଚାର୍ଯ୍ୟ






ଦଳାହରିତାଳ ଦ୍ୟୁତି- ପୀତ ଅମ୍ବର,
ଜବାଫୁଲ ରୁଚି ଜିଣା ଚରଣ ତଳ,
ତମାଳ ଶ୍ୟାମାଙ୍ଗ, ଦର- ହାସ ବଦନ,
ରାଜନ୍ତୁ ହୃଦୟେ ମୋର ରାଧାମୋହନ।
ଅକ୍ରୂର ସହିତ ତେଜି ନନ୍ଦ ସଦନ
ଗଲେ ମଧୁପୁରୀ ଗୋପୀ- ହୃଦ ମଦନ;
ରାଧାମଗ୍ନ ଘନଘୂର୍ଣ୍ଣି- ଚିନ୍ତା ସାଗରେ
ଭାସନ୍ତି ରାଧା ବିଧୁରା ଅଗାଧ ଜଳେ।
ଅନ୍ତର୍ଗତ ଖେଦ-ବହ୍ନି ଶମିବା ପାଇଁ
ଏକଦା ସଖୀସନ୍ଦୋହେ ବାତୁଳା ରାଇ

ବ୍ରଜେ ଯମୁନା ପୁଳିନେ, କୁଞ୍ଜ କୁଟୀର
ଦେଖି ଚିର ପରିଚିତ ଚିତ୍ତ ଅଧୀର ।
ସ୍ୱପ୍ନ ପ୍ରିୟ ସହଚରୀ କ୍ଲାନ୍ତିହାରିଣୀ
ମୂର୍ଚ୍ଛା ଅଙ୍କେ ହେଲେ ରାଧା ସୁଖ ଶାୟିନୀ;
ସୁକୁମାରୀ ତନୁ-ଲତା ଧୂଳି-ବିଲୀନା
ଝାଉଁଳି ପଡ଼ିଛି କ୍ଷୀଣା ସ୍ପନ୍ଦନ-ହୀନା ।
ସଖୀକୁଳ ଦେଖି ଏହା ଚିନ୍ତା-କାତରା
ଭଳନ୍ତି ରାଧା ଜୀବନ ଗଲାଟି-ପରା ।
ପଦ୍ମ ପଲ୍ଲବ ବ୍ୟଜନେ ବିଞ୍ଚି ମୃଦୁଳ
ସର୍ବେ ବୃଷଭାନୁଜେମା- ପାଶରେ ଠୁଳ ।
ଚକ୍ଷୁଁ ପଡ଼େ ଅବିରଳ ଲୋତକ ଜଳ,
କଳିନ୍ଦନନ୍ଦିନୀ ତନୁ ବଢ଼େ ପ୍ରବଳ ।
କଳା ପଡ଼ିଗଲେ ରାଧା ଚମ୍ପକଗୋରୀ,
ଲଳିତା ଯତନେ ବକ୍ଷେ ଧଇଲେ ତୋଳି ।
ଆଳିକେ ବସିଣ ପାଶେ ଶ୍ରୁତି କୁହରେ
ଫୁଙ୍କଇ, କିଏ ବା ଶ୍ୱାସ- ପବନ ଧରେ !
ଯମୁନା-ସଲିଳ-ସିକ୍ତ ପଦ୍ମ ପଲାଶ
ଧରି ବାଳୀ କେବା ବିଞ୍ଚେ ଶୀତ ବତାସ ।
କିଛିକ୍ଷଣେ ତହୁଁ କଣ୍ଠେ ଶ୍ୱାସ ସ୍ପନ୍ଦନ
ଦେଖି ଆଳିମେଳେ ଖେଳେ ହର୍ଷ ନିସ୍ୱନ ।

ରାଧାଙ୍କୁ କମଳଦଳ- କ୍ଷୋଭେ ଶୁଆଇ
ଗମିଲେ ଲଳିତା ନୀର ଆଣିବା ପାଇଁ ।
ଦେଖିଲେ ଆଗେ ପୁଳିନେ ଶ୍ୱେତ ମରାଳ,
ଖେଳା ଖେଳ ଗତି ଛନ୍ଦେ କେଡ଼େ ବାହାର ।
ମଧୁର ଝରୁତେ ସ୍ୱର- ଭୂମି-ଝଙ୍କାର
ଢାଳଇ ଶ୍ରୁତି କୁହରେ ପୀୟୂଷ ଧାର ।
ଦେଖି ହଂସ ଜନମିଲା ମନେ ଉଲ୍ଲାସ
ମନ୍ଦ ପଦକ୍ଷେପେ ଧୀର ଗଲେ ତା ପାଶ,
ସାଦରେ ନମିଲେ ତାକୁ କରି ଉଦ୍ଦେଶ
ଦୂତପଣେ ବରି ହଂସେ ରାଧା ସନ୍ଦେଶ
ପଠାଇବେ ମଧୁପୁରୀ ହରି ସଦନେ,
'ତାଙ୍କବିନା ବଞ୍ଚେ ଧନ ସଖୀ କେସନେ ।'
ବାରତା ନଅଇ ବହି କାହିଁ ବିହଙ୍ଗ
ଶୁଣା ନାହିଁ କେବେ ଏହା ରୀତି ବିଭଙ୍ଗ ।
ହରି ସେବକ ମଣଇ ସବୁ ସମାନ,
ଜଗତେ ତା ପକ୍ଷେ ନାହିଁ ସନ୍ଦେହ ସ୍ଥାନ ।
ପ୍ରେମ ବିରାଗରେ କୋପି କଂସ ମଥନେ
ଭର୍ତ୍ସିଲେ ସେ ମରାଳକୁ ରୁଷ୍ଟ ବଚନେ—
ନିର୍ମ୍ମଳ ସଲିଳେ ତୋର ବାସ ମରାଳ !
ପ୍ରମୋଦ ଲଭୁ ଭୁଞ୍ଜିଣ ପଦ୍ମ ମୃଣାଳ;

ନାହିଁ ତ କପଟ ତୋର ହୃଦ ବିଶଦ
ଦୁଃଖିନୀ ଅବଳା ପକ୍ଷେ ତୁ ଶରଣଦ ।
ସାଧୁଜନ ପ୍ରାଣ ପର- ଦୁଃଖେ କାତର
ଧନ ମାନ ଯଶ ସବୁ ମଣେ ଇତର;
ପର ଉପକାର ତାର ଏକା ସମ୍ବଳ,
ତେଣୁ ତୋ ସକାଶେ ଭିକ୍ଷା ନୁହେ ବିଫଳ ।
ବିରହଜ୍ୱାଳ-ବିକଳା ଗୋପ ରମଣୀ
ଅଦୋଷେ ପାସୋରି ଦେଲେ ନାଗରମଣି ।
କହୁଛି ଯାହା ମୁଁ ସବୁ ମନେ ପକାଇ
କହିବୁ ହରିଙ୍କି ମଧୁ- ପୁରୀକି ଯାଇ ।

( ୨ )

ଦୟା ବହି ଆନନ୍ଦେ ଯାଅ ତୁରିତ,
ପଥେ କୁଶଳ ହେଉ ଘୁଞ୍ଚୁ ଦୁରିତ ।
ଜନ୍ମେ ତରଳମତି ଗୋପ ବାଳକେ
ଧାଇଁବେ ଦେଖିବାକୁ ତୋତେ ପୁଲକେ ।
ଯେ ପଥେ ନେଇଗଲା କ୍ରୂର ଅକ୍ରୂର
ଗୋପ ଯୁବତୀପତି ନନ୍ଦକିଶୋର,
ସ୍ୱନାମ-ଖ୍ୟାତ ସେହି ପଥେ ଗମିବୁ
ତେବେ ଚଞ୍ଚଳ ଯଦୁ- ପୁରୀ ଦେଖିବୁ ।

ଧାରନ୍ତେ ସଦା କୃଷ୍ଣ-    ଦେଖା ଲାଳସା
ମଦନ-ଆରତରେ    ଦେଶ ବିବଶା,
ଲୋତକେ ପାଣ୍ଡୁ ଗଣ୍ଡ    ଗୋପ ଲଳନା
ବସିଣ କାନ୍ଦୁଥିବେ    ମୃଗନୟନା ।
ହରିଚରଣ ସଙ୍ଗ-    ଅଭିଳାଷିଣୀ
ଚକ୍ରନେମି ଲାଞ୍ଛନେ    ମନୋହାରିଣୀ
ମୋହନ ପଦବୀ ସେ    ନୁହେ ବନ୍ଧୁର;
ଚିହ୍ନି ଗମିବୁ ସୁଖେ    ଯେଣୁ ଚତୁର ।
ସ୍ୱଚ୍ଛ ମଧୁର ପୁଣି    ଜମ୍ବୁ ଶ୍ୟାମଳ
ଶମିବୁ ତୃଷା ପିଇ    ଯମୁନା ଜଳ;
ମୃଣାଳ ହିମକର-    ରୁଚି କୋମଳ
ଭୁଞ୍ଜି ଉଦର ଜ୍ୱାଳା    ହେବ ଶୀତଳ ।
ଉଚ୍ଚ ଘଞ୍ଚ ପାଦପେ    ବସିଣ କ୍ଷଣେ
ମେଣ୍ଟିବୁ ପଥଶ୍ରାନ୍ତ    ହରଷ ମନେ ।
ମୋ ଗୁହାରି ପଡ଼ିବା    ଯୋଗୁଁ ମନରେ
ସହସା ଉଡ଼ିଯିବୁ    ବୃଷ୍ଣୀନଗରେ
ମାନସ-ସରୋବର-    ବନ୍ଧୁ କାଦମ୍ବ !
ଯମୁନାଘାଟରେ ଶୋଭେ    ନବ କଦମ୍ବ,
ପତର ଗହଳରେ    ରହି କରଣ
ନ ପଡ଼େ ଅନ୍ୟଦିଗେ,    ସାଧାରଣ

ବସିଣ ତହିଁ ଆମ୍ଭ    ବସନ ହର
ପ୍ରକଟି କଲେ ଗୂଢ଼    ପ୍ରେମ-ଲହରୀ;
ତହିଁ ମୟୂରପିଚ୍ଛ-    ଗୁଚ୍ଛ ଚୂଳିଆ,
ନିକଷ କଷା ହେମ-    ପୀତ ଧଟିଆ
ତମାଳ ଶ୍ୟାମ ତନୁ,    ବନମାଳିଆ
ବିକାନ୍ତ ସୁମୋହନ    ବଂଶୀ ବାଳିଆ ।
ଲାବଣ୍ୟସିନ୍ଧୁ ଯାଏଁ    କି ଢଳ ଢଳ
ପରମାନନ୍ଦ ବୀଚି    ନାଚେ ତରଳ;
ପୂର୍ବଭାଗ୍ୟବଳୁଁ ସେ    ନୀପ ପାଦପ
ଆଜି ଲଭିବୁ ପଥେ    ସୁଖ ଅମାପ ।
ରାସ ଉତ୍ସବେ ରତା    ଗୋପ-ଅଙ୍ଗନା
ନାଚନ୍ତି ବେଢି କୃଷ୍ଣେ    ଘନଜଘନା;
ମୃଗମଦ କଣିକା    ନୃତ୍ୟ ରଭସେ
ଶ୍ରୀଅଙ୍ଗ ଲତିକାରୁ    ଝରତେ ଖସେ;
ତହୁଁ ଶ୍ୟାମ-ଶ୍ୟାମଳା    ରାସସ୍ଥଳିକା
ଆଭୀରୀ-ନାରୀ ପଦ-    ଦଳା ମଲ୍ଲିକା
ଦେଖି ଲଭିବୁ ପ୍ରାଣେ    ପ୍ରୀତି ଅପାର,
କୃଷ୍ଣଭକ୍ତ ବିନା ଏ    ଭାଗ୍ୟ କାହାର ?
ତଦନ୍ତେ କଳହଂସ !    ରାଜେ ମୋହନ
ବାସନ୍ତୀ-ବିରଚିତ    କେଳିସଦନ;

ଫେରାଇ ନେବୁ ତହୁଁ   ତୋହ ଈକ୍ଷଣ,
ରାଖିଲେ ଲାଗିଯିବ   ତହିଁ ନୟନ ।
୮ ପ୍ରମୋଦଭରେ ଭୁଲି   ଗଲେ ତୋ ଗତି
ଜୀବନେ ରହିବେ କି   ଗୋପଯୁବତୀ ?
ଛାଡ଼ିଣ ଗଲା ଦିନୁଁ   ବ୍ରଜବିହାରୀ
ପରାଣରେ ମମତା   ନାହିଁ କାହାରି ।
ତୋର ବଳମ୍ବେ ଯଦି   କାର୍ଯ୍ୟ ସାଧନେ
ଘଟଇ ବାଧା ନାହିଁ   ଶୋଚନା ମନେ;
ଦେଖିବୁ ସବୁ ହରି-   ରମଣ ସ୍ଥଳ
ସାଧୁ ଜୀବନ ତୋର   ହେବ ସଫଳ ।
ଶୃଣୂରଘାଟୀ କୃଷ୍ଣ—   ଗୁଣ ସକଳ
ପଥର ଗାରେ ଲେଖା   ହୃଦେ ମୋହର ।
ଜୀବନ ଥିବା ଯାକ   ତାଙ୍କୁ ସୁମରି
ତାଙ୍କ ଚିନ୍ତାରେ ଯାଉ   ଦିବା ଶର୍ବରୀ ।
ମୁରଲୀ ନାଦ ଶୁଣି   ଗୋପ ବନିତା
ଚକିତେ ହରିଣାକ୍ଷୀ   ଯହିଁ ମିଳିତା
ଗୃହୁ ଲବଙ୍ଗଲତା-   କୁଞ୍ଜେ ମୋହନ,
ବ୍ରଜ ଗୋକୁଳବନ୍ଧୁ,   ମଧୁ ମଥନ—
ସୁଖ ଶୟନେ ଯାର   ଶିଳା ରଚନ
ଭଜନ କ୍ରୀଡ଼ା ସାକ୍ଷୀ   ସେ ଗୋବର୍ଦ୍ଧନ

ଦେଖିବୁ ଆଗରେ ଭୁ  ଶ୍ୱେତ ଗରୁତ
ପ୍ରାଣେ ଲଭିବୁ ସୁଖ-  ଶାନ୍ତି ବହୁତ
ସୁଦର୍ଶନ ଲାଞ୍ଛିତ-  କରକମଳ-
ଆଲିଙ୍ଗନରସିକ  କ୍ରୀଡ଼ା ଭୂଧର
ଛନ୍ଦିତ ଅବିରତ ପର-  ଭବି ସମରେ
ଗିରିକୁଳ ଲଲାମ  ମହୀମଣ୍ଡଳେ,
ସାର୍ଥକ କଲା ନାମ  ଗୋବରଧନ
ରକ୍ଷିଣ ଗୋକୁଳକୁ  ଦେଇ ଶରଣ;
ସଂସାରେ ଅକିଞ୍ଚନ  ମହତ ଜନ—
ଆଶ୍ରୟରୁ ଅସାଧ  କରେ ସାଧନ ।
ଗିରି ପାରୁଶେ ଦେଖି  ତମାଳ ମାଳ—
ସୁମରି ପ୍ରାଣବନ୍ଧୁ  ନନ୍ଦଦୁଲାଳ
ଅନଙ୍ଗ ତୀବ୍ର ଦାହ-  ଜ୍ୱାଳ ବିକଳା
ତରଳାକ୍ଷୀ ଚପଳା  ମ୍ଲେଚ୍ଛ ଅବଳା-
ସନ୍ତପ୍ତ ତନୁ ତାପ  ମୁଞ୍ଚ ଯତନେ
କାଳନ୍ଦୀ ନୀରସିକ୍ତ-  ପକ୍ଷ ପବନେ
ଗମିବୁ ମନ୍ଦ ମନ୍ଦ  ସାରସବର,
ଲଭିବୁ ସୁଆଶିଷ  ହେବ ମଙ୍ଗଳ ।
ତା ପରେ ରଜେ ନୀପ-  କୁଞ୍ଜ କୁଟୀର
ଫୁଲ୍ଲ ସୁବାସ ଫୁଲେ  ହରଷେ ରୁଚିର,

ମନ୍ତ୍ରସ୍ମରସମର— କେଳି ପ୍ରାଙ୍ଗଣ,
ରସିକ ପରପାର୍ଷ୍ଠୀ— ରସ ସଦନ;
ରାସ ଉତ୍ସବେ ତହିଁ ଆଭୀର ନାରୀ
କଦମ୍ବଫୁଲେ ମଣ୍ଡି ରାସବିହାରୀ
ସୁରତ ଯୁଦ୍ଧେ ଫୁଲ— ଶର ପ୍ରହାରୀ
କ୍ରୀଡ଼ନ୍ତ ରାଗ ରକ୍ତ— ନଦୀ ପଥାରେ ।
ଶ୍ରମିରୁ କ୍ଳାନ୍ତ ତହିଁ ବସିଲେ କ୍ଷଣେ
ଲଭ, ହଂସ ! ପରମ- ଆନନ୍ଦ ମନେ ।
ନୋହିଲେ, କଳହଂସ ! ବ୍ୟର୍ଥ ଜୀବନ,
ବ୍ୟର୍ଥ ତୋହର ଆଦ୍ୟ—ରସ ବ୍ୟସନ ।
ଶରଦମେଘ ଶ୍ରେଣୀ— ନଭ ଧବଳ
ଅଭ୍ରଙ୍କଷର ଶିର ବନାନ୍ତର
ପଡ଼ିଛି କଇଲାସ— ଶିଖ ଯେସନ,
ତୁମେ ଗିରୀଶବନ୍ଧୁ କିଙ୍କରଗଣ
ଆରୋହଣ ସକାଶେ ଦୂରୁଁ ମିଳନ୍ତି
କ୍ରୀଡ଼ା କୌତୁକେ ପଥ- କ୍ଳାନ୍ତ ହରନ୍ତି;
ଦେଖିଣ ତାକୁ ପଥେ ବିସ୍ମିତ ମନେ
ଭବରୁ କାହ୍ନୁ ନାଶ କଲେ କେସନେ ।
ମୁରଲୀପାଣି ବିନା ଦୀନା ମଳିନା
ବୃନ୍ଦାବନରେ ଥିବେ ଗୋପ ନବୀନା

ଲଭିଣ ନିତମ୍ବିନୀ ଚରମଦଶା ;
କହିଲେ ନ ସରଇ ତାଙ୍କ ଦୁର୍ଦ୍ଦଶା ।
ଶୁଣି ତୋ ଉଚ୍ଚରିବ ସୁଗୁଣମଣି-
ମୁରଜିତ ନୂପୁର- ନିକ୍ୱଣ ମଣି
ଫେରିବ କ୍ଷିପ୍ର ତାଙ୍କ ମଲ୍ଲ ଜୀବନ,
ପୀୟୂଷ ବରଷିବ ତୋହ ନିସ୍ୱନ ।
ଭାସ୍କର ବିମ୍ବ ଚୁମ୍ବି ଘନ ଶ୍ୟାମଳ
ଭାଣ୍ଡୀର ନାମ ଖ୍ୟାତ ପାଦପବର
ବିରାଜେ ବୃନ୍ଦାବନେ, ରେ ପତ୍ରରଥ,
ବାଟରୁ ବସି ତହିଁ ଗନ୍ତବ୍ୟ ପଥ ।
କମଳଯୋନି ନେତ୍ରୁ ପ୍ରେମ ସଲିଳ
ଝରନ୍ତେ ମୁହୁ ଯେଉଁ ସ୍ଥାନ ପଙ୍କିଳ
ଗମିଲେ ସେ ପ୍ରଦେଶେ ବନଦେବତା
ମଣିବେ ଆସିଲେ କି ପୁଣି ବିଧାତା ।
ନନ୍ଦ କହ୍ନାଇ ମଗ୍ନ କାଳିନ୍ଦୀଜଳେ
ଶୁଣି ଗୋପ ଯୋଷିତ ଧାଇଁଲେ ଖରେ ;
ନୟନୁଁ ଅବିରତ ଝରିଲା ନୀର,
ଲୋତକଜଳେ ହେଲା ପଥ ପିଚ୍ଛିଳ,
ଖସନ୍ତେ ପଦନ୍ୟାସ ବ୍ରଜରମଣୀ
ବ୍ୟାକୁଳତା ବିଳମ୍ବ ପ୍ରମାଦ ଗଣି ।

ଲାସ୍ୟକ୍ରୀଡ଼ାପ୍ରହର୍ଷ- ପୁରୁଷାନ୍ୱିତ-
ସ୍ଖଳିତ ଫଣୀ-ମଣି- କୃଷ୍ଣ ଲୋହିତ
ନୀପ ଫୁଲ କିଞ୍ଜଳ୍କ ମଧୁ ବାସିତ
ପିଇବୁ ହ୍ରଦଜଳ ହେଲେ ତୃଷିତ ।
ସ୍ମର କାଳୀୟ ବିଷ- ଧର ଗଞ୍ଜନ
ଭୁଲିବୁ ଶ୍ରାନ୍ତ ଲଭି ନବ ଜୀବନ ।
ନବ୍ୟ-ସ୍ତବକଭର— ଶୋକ ବିହ୍ୱଳ,
ଆଶ୍ଲିଷ୍ଟ ବୃନ୍ଦ ପ୍ରୀତ- ଯତ୍ନ କୁଶଳ,
ତୃଣାବର୍ତ୍ତ-ଅଘାତ- ବିରହାନଳ-
ସଂତପ୍ତତନୁ ବନ- ଦେବ ସକଳ
ପୂଜିବୁ କୁସୁମରେ ଭକତିଭରେ
ପାଇବୁ ସ୍ଥାନ ହରି- ଚରଣ ତଳେ ।
ନ ଆଚରି ଭକତ- ବନ୍ଦନ ବିଧି
ଲଭିଛି କିଏ ଭକ୍ତ- ହୃଦୟନିଧି ?
ନିତ୍ୟ ଗୃରୁ ଝଙ୍କୃତ କେକା ବିରୁତେ
ଆନ୍ଦୋଳିତ ବଲ୍ଲରୀ ମନ୍ଦ ମରୁତେ
ଦେଖିବୁ ଏକାଦଶ- ବନପୁରତେ
ମୁଗ୍ଧ ନୟନ ଲୋଭି ସ୍ଥାନ ଜଗତେ ।
ତା ପରେ ବ୍ରଜପଛେ ଦ୍ୱାଦଶ ବନ
ନିତ୍ୟ ବକୁଳ ଚୂତେ ସାଜେ ଶୋଭନ;

ମକରକେତୁ ଝାଣି ଅଳିଶିଞ୍ଜିନୀ
କୁସୁମଶରେ ବିନ୍ଧେ ବ୍ରଜକାମିନୀ ।
ଏ ସବୁ ଅତିକ୍ରମି ପଥେ ତୋହର
ଗମିବୁ ମଧୁପୁରୀ ବିହଙ୍ଗବର !
ଯମୁନା ପୁଳିନେ ସେ ଦିଶେ ମୋହନ
ଗୃହୁ ସଉଧେ ଅଙ୍ଗ ମଣ୍ଡି ଯତନ ।
ଗିରୀଶ ଗିର ନିଭ ସଉଧାବଳି
ଯଦୁକୁଳ ନିର୍ମଳ ଯଶେ ଧବଳି
ଧରିଛୀ ତହିଁ ଉଭା, ଦେଖିଲେ ଥରେ
ଲାଖି ଯିବ ତୋ ଆଖି ହର୍ମ୍ୟ ଉପରେ ।
ଦେଖିବୁ ତହିଁ ଚନ୍ଦ୍ର- ଚୂଡ ବାହନ
କରଇ କାହିଁ ନବ ତୃଣ ଭକ୍ଷଣ,
କାହିଁ କମଳଯୋନି ପ୍ରିୟ ମରାଳ
ଭୁଞ୍ଜଇ ସରସୀରେ ପଦ୍ମ ମୃଣାଳ,
କାହିଁ ବା କେକୀ ବସି ଭୁଞ୍ଜେ ଭୁଜଙ୍ଗ,
ଶଲ୍ଲକୀ ଭଙ୍ଗେ କାହିଁ ଇନ୍ଦ୍ର ମାତଙ୍ଗ,
ଅମରାବତୀ ତେଜି କୃଷ୍ଣ ଦର୍ଶନେ
ଆଗତ ମଧୁପୁରୀ ଅମରଗଣେ ।
ମଧୁପୁର ଦାଣ୍ଡରେ କୃଷ୍ଣ ଆମ୍ଭର
ଗମନ୍ତେ ମୁଗ୍ଧା ଦେଖି ପୁର ନାଗରୀ ।

ଅଙ୍ଗୁ ଉତ୍ତରୀ ଖସି    ଲୋଟେ ଅବନୀ,
ମୁକୁତାହାର ଛିଣ୍ଡି    ଚୁମ୍ବେ ଧରଣୀ,
ନାହିଁ ଦୃଷ୍ଟି ତହିଁ କି,    କୁଳ-ରମଣୀ
ଭାବନ୍ତି ଏକା ସିନା    ନାଗରମଣି ।
ଦେଖି ଏ ସଖୀସତି    ବିଟପୀଦଳ
ଉପହସନ୍ତି ମୁଖେ    ଦେଇ ଅଞ୍ଚଳ,
କାହୁଁ ବୁଝିବେ ଗୂଢ଼    ପ୍ରେମ ଲହରୀ
ଭୁଲନ୍ତି ନିଜ ମାନ-    ଦଣ୍ଡକୁ ଧରି ।
ଗବାକ୍ଷ ପାଶେ ବସି    କେଉଁ ଯୋଷିତ
ଦକ୍ଷିଣ ପାଦ ଲାକ୍ଷା-    ରସେ ରଞ୍ଜିତ
କରଣ ନେଉଁ ବାମ-    ପାଦେ ରଞ୍ଜନୀ
ଶୁଣି ଧାଇଁଲା ଦାଣ୍ଡେ    ମୁରଲୀ ଧ୍ୱନି
ସଖୀଙ୍କ ଡ଼ାକି ଉଚ୍ଚେ    ଭାଷେ ବଚନ
"ବେଶବିନ୍ୟାସ ଛାଡ଼ି    ଆସ ବହନ
ଦେଖିବୁ ଅଳିନ୍ଦରେ    ଗୋପୀମୋହନ"
ରମଣୀ କଳକଳେ    ସ୍ତବ୍ଧ ଶ୍ରବଣ ।
ଗୃଲନ୍ତି ଢ଼ଳି ଢ଼ଳି    କଂସମଥନ,
ଅଶୋକ ଫୁଲ ଦଶେ    କର୍ଣ୍ଣେ ଶୋଭନ ।
ପୁରବାସିନୀ ସ୍ନାତା    ଲୀଳା-ଅପାଙ୍ଗେ
ମଥୁରପୁରୀ ଖେଳେ    ପ୍ରେମତରଙ୍ଗେ ।

ମଣିଭବନପରେ        କାହିଁ ଲଳନା
ବାତାୟନ ପାରୁଶେ        ସ୍ତବ୍ଧନୟନା
ତଡ଼ଇ ସଖୀକୁଳ        ଦେଇ ଖିଡ଼କ
ଦେଖିବ ଏକାକିନୀ        ବନମାଳିଙ୍କି ।
କାହିଁ ପଦ୍ମବଦନା        ବସି ବିଜନେ
କରଇ କି ଭାବନା        ଶୂନ୍ୟ ନୟନେ ।
ପରିଜନେ ଜଣାନ୍ତି        କଥା ଯେତେକ
ନପଶେ କର୍ଣ୍ଣବିଳେ        ତହୁଁ ପଦେକ ।
ଶଙ୍କା ଜନମେ ମନେ        ଯୁବାସତ୍ତମ
ନୀରଦ ଶ୍ୟାମତନୁ        ନାଗରୋତ୍ତମ
କାମିନୀ ଚିତ୍ତଚୋର        ଶୋଭାଂ ସମ୍ଭାର
ନେବ ପଥିକ ଅବା        ହେଲେ ବାଳାର ।
କୃଷ୍ଣବିରହେ କାହିଁ        କେ ନତମୁଖୀ
ଲାଜ ଉପେକ୍ଷି କାନ୍ଦେ        ମତ୍ତକାଶିନୀ ।
ସଖୀ ସମ୍ବୋଧି କହେ        "ନ ଶୋଚ ବାଳା
ଅପାଙ୍ଗଫାନ୍ଦେ ହରି        ପଡ଼ିବେ ଧରା" ।
ଖିଳ ବିଶ୍ୱମୋହନ        ନାଗରମଣି
ଗମନ୍ତି ଯେଉଁପଥେ        ପୁରରମଣୀ
ଖୋଲିଦିଅନ୍ତି ନିଜ        ହୃଦ ବିପଣୀ
ସଜାଡ଼ି ଯତନେ ପ୍ରୀତି-        ରତନମଣି ।

ଗ୍ରାହକ ବଣିଜରେ   କାଲଆସୁନା
କପଟ କଷଟିଆ,   କାଇଛେ ଉଣା
ହେଲେ ପ୍ରୀତିରତନ୍ନୁଁ   ଯାଆନ୍ତି ଖସି
ଆନ ଦୋକାନେ ମୂଲ   କରନ୍ତି ବସି ।
ଦେଖି ପ୍ରତ୍ୟକ୍ଷେ କୃଷ୍ଣ-   ଚନ୍ଦ୍ରବଦନ
ଲଖି ରହିଲା କୁଳ-   ବଧୂ ନୟନ,
ଅଞ୍ଚଳେ ବାନ୍ଧନେଲେ   ବ୍ରଜସମ୍ପଦ
ଘଟାଇଲେ ଆଭୀର-   କୁଳବିପଦ ।
ଏସବୁ ଅତିକ୍ରମି   ଯଦୁନିକେତ
ନିବିଡ଼ ସମାକୁଳ,   ହେଜ ସଙ୍କେତ
ଗମିବୁ ଶ୍ରୀନିବାସ-   ବାସଭବନ,
ଗଗନଚୁମ୍ବି ତହିଁ   ଉଡ଼େ କେତନ ।
ସ୍ଫଟିକସରେ ତହିଁ   ସ୍ୱର୍ଣ୍ଣକମଳ,
କୀ ତନ୍ତି ମନସୁଖେ   ମରାଳଦଳ,
ସ୍ଫଟିକରେ ତାହାଙ୍କ   ତନୁ ରଚନ
ଅକଳଙ୍କ ମାଣିକେ   ଚଞ୍ଚୁ ଚରଣ ।
ବେଷଭବନେ ତହିଁ   ଅଗୁରୁ ଜଳେ,
ଧୂମଲତିକା ଭ୍ରମେ   ହର୍ମ୍ୟ ଉପରେ,
ନୀରଦଶ୍ୟାମ ତନୁ   କଳାପୀକୁଳ
ଦେଖି ହର୍ଷେ କରନ୍ତି   ସୁତି ବହୁଳ ।

ମାନସରୁଚି ଯେବେ ତାର ଦର୍ଶନେ
ସ୍ଫୁରଇ, ହଂସ ! ନାହିଁ ଭାବନା ମନେ ।
ଜନପଦେ ବସୁ ତୁ ଜନପ୍ରିୟତା—
ପ୍ରତି ଜାଣେ ମୁଁ ଅଛି ତୋର ମମତା ।
ଶୋଭଇ ବାତାୟନ ନିତ୍ୟ ନୂତନ
ମୁକୁତାମାଳେ ମଣ୍ଡି ତନୁ ଯତନ ।
ବହଇ ମନ୍ଦ ମନ୍ଦ ସୁଗନ୍ଧବହ,
ବିରାଜଇ ଅମଳ ସ୍ତମ୍ଭନିବହ ।
ଭିତ୍ତିରେ ବିରଚିତ ଛଣା କାଞ୍ଚନେ
କୃଷ୍ଣ-କିଶୋର ଲୀଳା ଗୋପଭୁବନେ ।
ଯେନିଣ ଅଙ୍କେ କେତେ ଜୀବନ୍ତ ଛନ୍ଦ
କେଳିମନ୍ଦିର ତହିଁ ଅତି ବିଚନ୍ଦ ।
ପୁର ପ୍ରାଙ୍ଗଣେ ତାର ଚୁମ୍ବି ଧରଣୀ
ରାଜଇ ମରକତ- ଯଷ୍ଟି କାଞ୍ଚନୀ,
ମଦକଳ କଳାପୀ- କୁଳ ମୋହନ
ନାଚଣ ତହିଁ ରଚି- ଥିବେ ଶୟନ ।
ତେଜି ଆତଙ୍କ ସଖା ସାରସବର !
ମନମଉଜେ ବସି ଯଷ୍ଟିଉପର
ଦେଖି ସମୟ ବୁଝି ସୁଅବସର
ଜଣାଇବୁ ଛାମୁରେ ଦୁଃଖ ଆମ୍ଭର ।

ମୃଦୁଳ-ତୁଳୀଶେଯେ ସ୍ୱର୍ଣ୍ଣପଲଙ୍କେ
ଈଷତରେ ଆଉଜି କମଳା-ଅଙ୍କେ
ପୂର୍ଣ୍ଣେନ୍ଦୁ ଉପାଧାନେ କଫୋଣିଭରେ
ସୁଧାରମଣ ବସି- ଥିବେ ସୁଖରେ ।
ଶ୍ରୀଅଙ୍ଗ ଶୋଭି ଜିଣେ କାଳିନ୍ଦୀ ଜଳ,
ଶ୍ରବଣମୂଳେ ଦୋଳେ ମଣି ମକର,
କନକକାନ୍ତି ଜିଣା ପିନ୍ଧା ବସନ;
ଦେଖି ଏ ସବୁ ମୁଗ୍ଧ ହେବ ନୟନ ।
ବିକଦ୍ରୁ ନାମ ଯଦୁ- କୁଳ ପ୍ରାଚୀନ
ମନୋହର ସଙ୍ଗୀତ- କଳା ପ୍ରବୀଣ
ଗାଅଇ ଗୀତ ବୀଣା- ତାରେ ମିଶାଇ
କୃଷ୍ଣ ପାରୁଶେ ତାଙ୍କ ମନ ରସାଇ ।
ମଣିସ୍ତମ୍ଭେ ଆଉଜି କ୍ରୂର ଅକ୍ରୂର—
ଆକୁଳା ଭୟେ ଯାର ଆଭାସ କୁଳ-
କୀର୍ତ୍ତି କୁରୁକୁଳ ଯଶୋଗୀତିକା,
ଶୁଣନ୍ତି ସର୍ବେ ଢେ଼ର ଶ୍ରୁତି ଲତିକା
ସାତ୍ୟକି ବୀର ଶିନି- ବଂଶ ତିଳକ,
କୃତବର୍ମା ସୁମତି ବହି ପୁଲକ
ବାମ ଦକ୍ଷିଣେ ଉଭା, ବାଳବ୍ୟଜନ
ଢୁଳାନ୍ତି ଗୃରୁ ଧଶେ କରଗୃଳନ ।

ଉଦ୍ଧବ ବସି ପଦ୍ମ- ଚରଣ ତଳେ
ମଞ୍ଜାଳୁଥିବେ ପାଦ ପ୍ରେମ ବହଳେ ।
ମାନସଭୃଙ୍ଗ ଚୁମ୍ବି ରଙ୍ଗ ରଞ୍ଜିବ
ମକରନ୍ଦ ଅମୃତେ ନିବନ୍ଧ ଥିବ ।
ସୁଖଶାଳାରେ ବସି ପକ୍ଷିରାଜନ
କରଯୋଡ଼ି ଗରୁଡ଼ ଶଙ୍କିତମନ
କଣ୍ଠିତେଉ ଗୃହିଁଛି କିବା ଆଦେଶ
ହେବ ନ ପଡ଼େ ତାର ନେତ୍ର ନିମେଷ ।
ଯାର ଅଙ୍ଗୁଳି ନଖ- ରୁଚି ବର୍ଣ୍ଣିନେ
ବିଧି ନୁହେ ସମର୍ଥ ଚତୁର୍ବଦନେ
କୋଟି ଲାବଣ୍ୟନିଧି ରତିକବର-
ଶୋଭି ଚରଣେ ମୁହିଁ କେତେ ମାତର !
ସ୍ୱଭାବେ ପୁଣି ମୁହିଁ ମୂଢ଼ ଅବଳା
ନାରୀ ପ୍ରଜ୍ଞା ସୁଲଭ- ଗୁଣ ଚପଳା ।
କୃଷ୍ଣେ ଯେ ଅନୁରାଗ ତାର ରଭସେ
ମାତିଛି ମୁଗ୍ଧା ମୁହିଁ କେଳି ସାହସେ ।
ନଟବର ରୁଚିର— ପାଦ ନଖର
ନିଅନ୍ତେ ଗୈରିର ଗୋପ- ବାଳକଦଳ
ମନବରସେ ବିଧି କର ଯତନ
ରଖନ୍ତେ ଶିରେ ଶିଖା ରାଜେ ମୋହନ ।

ଦେଖି ନଖ ବିକାଶ ବାଇ ବିପଞ୍ଚୀ
ବିରଞ୍ଚିସୁତ କେତେ ସ୍ତୁତି ବିରଚି
ପ୍ରେମାନନ୍ଦେ ନାଚନ୍ତି ପୁଣି ଶୋଚନ୍ତି
ଭକ୍ତେ ମୁକ୍ତି ନ ଲଭି ଶ୍ରେଷ୍ଠ ସମ୍ପତ୍ତି ।
ଚରଣ ଶ୍ରୀ ଇଚ୍ଛି ସରୋଜରାଜି
ଉଦକେ ତପୋରତା ଆସନ ସାଜି,
ସହନ୍ତି ଖର ବର୍ଷା, ନାହିଁ ଭାବନା;
ଏକା ଭାବନା ସିନା ଇଷ୍ଟସାଧନା ।
ଦେଖି ଏ ଦୁରାସକ୍ତି ହେମ ରାଜନ
ନାଶିଲା ଅବ୍ଜକୁଳ କରି ଶାସନ,
ହେମନ୍ତେ ବନ୍ଦେ ତେଣୁ ପ୍ରଣତିଭରେ
ଦୁରାକାଙ୍‌କ୍ଷା କାର କେ ପୂରଣ କରେ ?
ମରକତ କଦଳୀ ଜିଣି ସୁନ୍ଦର
ଲମ୍ବ ପୀନ ବର୍ତ୍ତୁଳ ଊରୁଯୁଗଳ
ଗୋପ ଯୋଷିତ ଚିତ୍ତ- ମତ୍ତ ମାତଙ୍ଗ-
ଆଲାନ, ବାହୁଯୁଗ ପାଶ ଭୁଜଙ୍ଗ ।
ନାଭିସରସୀ ଶଙ୍କା- କୁଳ ଗଭୀର,
ଗୋପୀନୟନ ମୀନ ଖେଳେ ତହିଁର ।
ଭୁଞ୍ଜି ଲାବଣ୍ୟସୁଧା ସୁଖେ ବିଚରି
ସ୍ୱଚ୍ଛନ୍ଦରେ ବଞ୍ଚଇ ନେଇଁ ଶଫରୀ ।

କଳ୍ପ ଆରମ୍ଭେ ତହିଁ ହେମକମଳ
ବିକାଶଇ ବିଧାତା- ଜନ୍ମଶଯ୍ୟସ୍ଥଳ,
ସ୍ୱର୍ଗ ମର୍ତ୍ତ୍ୟ ପାତାଳ- ସୃଷ୍ଟିଆଧାର
ତ୍ରିଲୋକ ଶୋଭିସିନ୍ଧୁ ସୁଧାଭଣ୍ଡାର ।
ବାଞ୍ଛନ୍ତେ ଯଶୋବନ୍ତୀ ଲବଣୀଚୋର
ତ୍ରିଗୁଣରଙ୍କୁ ଛନ୍ଦେ ନବକିଶୋର
ଲଭି ଦାମ ପରଶ କ୍ଷଣମାତର
ତ୍ରିବଳି ଲତାଦ୍ୟୁତି ଧରେ ଉଦର ।
ରୋଦନବ୍ୟାଜେ ଶିଶୁ ନନ୍ଦ କହ୍ନାଇ
ଜନନୀ ଆଗେ ଦେଲେ ମୁଖ ମେଲାଇ;
ଉଦରମଧ୍ୟେ ଦେଖି ତ୍ରିଭୁବନ
ଯଶୋଦା କଲେ ସ୍ୱାର୍ଥ ନିଜ ଜୀବନ ।
ଲମ୍ବଇ ବକ୍ଷେ ବନ- କୁସୁମହାର,
ଦୋଳେ କୌସ୍ତୁଭ ଜିଣି ମରୀଚିମାଳ;
ବିଶାଳ ବକ୍ଷ ଦେଶେ ଅତି ମଞ୍ଜୁଳ
ଦହଇ ମନସିଜେ କାମିନୀକୁଳ ।
ମର୍କତମଣିସ୍ତମ୍ଭ ବାହୁଯୁଗଳ
ନିନ୍ଦି ଅଙ୍ଗଦେ ରାଜେ ସୁମନୋହର
ବିରହାତୁର ଗୋପୀ- କଣ୍ଠ-ଆଶ୍ଳେଷେ
ଅଗୁରୁ ସୌରଭରେ ବାସେ ବିଶେଷେ ।

ନବଲାବଣ୍ୟ ଖଣି        ଚନ୍ଦ୍ରବଦନ
ସ୍ମିତ ନୂତନ ସୁଧା-        ରସ ସଦନ
ମଦନାବେଶେ ଗୁରୁ        ଭ୍ରୂ ନର୍ତ୍ତନେ
ମଧୁରତର ମୁକ୍ତା-        ବଳି ରଦନେ ।
ବହୁତ କହିବାରେ        କି ପ୍ରୟୋଜନ,
ମଧୁରିବ, ମୋର        ମିତ ବର୍ଣ୍ଣନ
ଅଭିଜ୍ଞାନ ସଙ୍କେତ        ମଣି କେବଳ
ଚିହ୍ନିବୁ ଚତୁର ତୁ        ମୁରଲୀଧର ।
ନେହ ଅତଏବ ତୋର        ପୁରୁଷରତ୍ନ
ହେଲେ ଦେଖିଣ ତାଙ୍କ        ରୂପ ଲାବଣ୍ୟ
ଲଭିବୁ ପରାଣରେ        ପ୍ରୀତି ଅପାର
ମଣିବୁ ସହଜରେ        ଯଶୋଦାବାଳ ।
ମତ୍ତ ମରାଳୀ ରତି-        କଳା ଚତୁର !
ଦେଖିବୁ ଯେବେ ମଧୁ-        ପୁର ବଧୂର
ଲାସ୍ୟ ବିଳାସେ ମୁଗ୍ଧ        ଲୁବ୍ଧ ଆମ୍ଭର
ନ ପକାଇ ତାହାଙ୍କ        ଶ୍ରୁତିପଥର
ଗ୍ରାମ୍ୟରମଣୀ କଥା,        ବୁଝି ସମସ୍ତ
ଆତୁର ନୋହି କ୍ଷଣେ        ଧରିବୁ ଥୟ୍ୟ ।
କରଇ ଚିତ୍ତ ଯାର        ସୁଧା ସେବନ
ଘୋଳ ଦହିରେ ତାର        ବଳେ କି ମନ ?



ଦେଖିବୁ ଯେବେ ବୃନ୍ଦା- ବନ ସୁନ୍ଦର
ଗାଉଛି ପିକ ତୋଳି ସ୍ୱର ଲହରୀ,
ବହୁଛି ବାତ ଗିରି- ମଲ୍ଲି ସଞ୍ଚାରି
ଜଣାଇବୁ ଛାମୁରେ ଆମ୍ଭ ଗୁହାରି ।
ଧୀରଲଳିତ ଆହେ ଗୋପୀରମଣ !
ଗୋଚାରଣ କଥା କି ନାହିଁ ସ୍ମରଣ ?
ବଲ୍ଲବୀକୁଳେ ରାଧା ତୁମ୍ଭ ବଲ୍ଲଭୀ
ମୃତକଳ୍ପା ସେ ତୁମ୍ଭ ସଙ୍ଗ ନ ଲଭି ।
ତେଣୁ ତାହାଙ୍କ ଦୁଃଖେ ଅତି ଦୁଃଖିତା
ହୃଦୟ ଆବେଗରେ ସଖୀ ଲଳିତା
ନିବେଦଇଛି ଛାମୁରେ ଦୁଃଖ ସନ୍ଦେଶ
ଚରଣ ଅରବିନ୍ଦେ ନମି ଅଶେଷ ।
ଆବାଲ୍ୟରୁ ତୁମ୍ଭର ସ୍ନେହଲାଳିତା
ନବ କମଳଦଳେ ପ୍ରତିପାଳିତା
ଝୁରେ ଧେନୁ କପିଳା, ପୟସଭରେ
ଜଘନଭରଶ୍ରାନ୍ତା ଚଳେ ମନ୍ଥରେ ।
ନୀପ ସମୀପେ ତୁମ୍ଭ ଲତା ବାସନ୍ତୀ
ସ୍ୱହସ୍ତେ ଲଭିଥିଲା ଚୂତ ସଙ୍ଗତି,
ମକରନ୍ଦ ବ୍ୟାଜରେ ତୁମ୍ଭ ବିରହେ
କାନ୍ଦଇ କନ୍ଦାଇଣ ଗୋପୀନିବହେ ।

ଗୋପକୁଳ ପରମା-  ନନ୍ଦ ବସତି
ଥିଲ, ମୁରମଥନ,  ଗୋପ ସମ୍ପତ୍ତି;
କି ଅବଗ୍ରହ ହେଲା  କ୍ରୂର ଅକ୍ରୂର
ଗୋପ ସମ୍ପଦ କଲା  କ୍ଷଣକେ ଚୂର ।
ଦୂରେ ରହନ୍ତେ ବ୍ରଜ-  ବସତି ଛାଡ଼ି
ଅରିଷ୍ଟାସୁର ସଦା  ପଡ଼ିଇ ମାଡ଼ି,
ତୃଣାବର୍ତ୍ତ ତାଡ଼ନେ  ପୁର ଉପଦ୍ରୁତ,
ଗୋପସୁନ୍ଦରୀ ଗଣୁ-  ଛନ୍ତି ବିପଦ ।
ତୁମ୍ଭ ବିହୁନେ ଆଜ  ଗୋପ ଭୁବନ
ଦିଶଇ ଶୂନ୍ୟ ଯେଣେ  ଗୃହେଁ ନୟନ,
ନାହିଁ ତ ଆଉ ସେହି  ପୂରୁବ ଶିରୀ
ଝୁରି ମରନ୍ତି ଦୁଃଖେ  ନାରୀ ଆଭୀରୀ ।
ନ ପଡ଼ନ୍ତି ଚରଣ-  ଧୂଳି ତୁମ୍ଭର
ବିପିନେ ଲତାଶ୍ରେଣୀ  ବିଷବଲ୍ଲରୀ;
ବାତ ଗୃଳିତ ଫୁଲ-  ବାସ ମଧୁର
ଘ୍ରାଣି ଯାଆନ୍ତି ମୂର୍ଚ୍ଛା  ଭ୍ରମରୀକୁଳ ।
ଲାସ୍ୟ ପ୍ରହର୍ଷ ରସ-  କେଳି ପ୍ରବୀଣା
କରନ୍ତି ସେବା ରାଜ-  କନ୍ୟା ନବୀନା ।
ଅବିମୁଗ୍ଧା ସରଳା  ଗ୍ରାମ୍ୟ ଯୁବତୀ
ପଡ଼ିବେ ମନେ କମ୍ପା  ଆଉ ସମ୍ପ୍ରତି ?

ରାଧାମୋହନ ଆହେ  ନାହିଁ ସେ କାଳ
ଅଶ୍ରୁ ନ ଥିଲା ଯେବେ  କାଳ ବିକାଳ
ସଙ୍ଗମ ପ୍ରାର୍ଥୀ ଯେବେ  କାଟି ବିଟପୀ-
ତଳିରେ ରହୁଥାଅ  ବିଜନେ ଛପି ।
ତେଜନ୍ତେ ଗୋପୀକୁଳ  ପ୍ରାଣରମଣ !
ଦେବେ ନାହିଁ ତୁମ୍ଭଙ୍କୁ  କେହି ଦୂଷଣ;
କାଳିଆ ଧର୍ମ ଏହା  ଜାଣେ ଜଗତ
ଛାଡେ ପୁରୁଣା ଯେବେ  ନୂଆ ଆଗତ ।
ବାୟସ ନୀଡ଼ ପୋଷା  ପିକ ଶାବକ
ପାସୋର୍ ଦେଇ କ୍ଷଣେ  ପ୍ରତି ପାଳକ
ଉଡ଼ି ଯାଅଇ କାହିଁ  ନ କରି ଲକ୍ଷ
ଜନ୍ମନ୍ତେ ଅଙ୍ଗେ ତାର  ନୂତନ ପକ୍ଷ ।
ଛାମୁରେ ଫେଇଛି ମୁଁ  ଦୁଃଖ ନାଟକ
ସଂକ୍ଷେପେ ରଚି ପୂର୍ବ-  ରଙ୍ଗ ମାଦକ
ରସ ଆସ୍ୱାଦ ତହୁଁ  ରସଶେଖର
କାବ୍ୟ ପ୍ରସଙ୍ଗ ତୁମ୍ଭ  ହେବ ଗୋଚର ।
ବୃନ୍ଦାବନ ଚନ୍ଦ୍ରମା !  ଆଗେ ପଶୁରେ
ପାସୋର୍ ଦେଲ ରାଧା  କେଉଁ ବଶୁରେ ?
କୃପଣ ହେଲା କିମ୍ପା  ଶ୍ରୁତି ଯୁଗଳ ?
ଶୁଣିଲେ ରାଧା ନାମ  ବ୍ୟଥେ ବିକଳ ।

ପରୋକ୍ଷେ କି କହିବ  କୁଞ୍ଜବିହାରି !
ଦୁଷ୍ଟ ବିସ୍ମୃତ ହେଲ  ଆମ୍ଭ ଭଗାରି, ;
ଲୁଚି ପଛରେ ଥିଲ  ଦାଉ ସାଧିଲ,
ଅଲ୍ୟଲା କରି ପାଳି  ଫୋପାଡ଼ି ଦେଲ ।
ପଣ୍ଡୁପୟୋଷାଭୂଷା  ରମଣୀମଣି
ସାଧ୍ୱୀ ସୁଶୀଳା କୋଟି-  ଲାବଣ୍ୟଖଣି
କ୍ଷୀଣା ରାଧିକା ଧ୍ୟାୟି  ପଦକମଳ
ଇତର ନାରୀ ପ୍ରାୟେ  ବଞ୍ଚେ ବାସର ।
ପାସୋରିଦେଲ ଗୋଷ୍ଠ  ଗୋଷ୍ଠୀତିଳକ,
ଦୟା ନ ବହେ ଲବେ  ଯଦ୍ଵ ଅନ୍ତକ
ବନଫୁଲ ସୌରଭେ  ଅତି ଦୁଃସହ
ଦୁର୍ଦ୍ଦିନ ସଖୀ କେତେକ  ସାରିବ କହ ?
ଲୋତକ ଅବିରତ  ଝରି ନୟନୁଁ
ବଢ଼ିଲା ନଦୀ ଜିଣି  କାଳିନ୍ଦୀ ତନୁ ।
ଭଗିନୀ ପରିଭବେ  ଦ୍ୱେଷି ଶମନ
ନ କଲା ରାଧା ମୃତ୍ୟୁ-  ବାଞ୍ଛା ପୂରଣ ।
ଦୂରରୁ ଭାବି ତୁମ୍ଭ  ରୂପ ମୋହନ
ପ୍ରେମାନଳେ ଦେଇଛି  ଝାସି ଜୀବନ
ହତାହତ ବିଗ୍ନର  ମନେ ନ ଧରି
ପୋଡ଼ି ମରଇ ରାଧା  ପତଙ୍ଗ ପରି ।

କିସ କହିବ ଅବା ଅଣଚଭୁଣି
ନିଜଦୋଷରୁ ସଖୀ ମରଇ ଝୁରି ।
ଭୁଲି ଯାଆନ୍ତା ଯଦି ତୁମ୍ଭ ଭାବନା
ସରନ୍ତା କ୍ଷଣେ ତାର ସବୁ ଯାତନା ।
କୁବୁଜା କରିଥିଲା କେଉଁ ସୁକୃତି
ଲଭିଲା ଦିବ୍ୟଶୋଭି ତ୍ୟଜି ବିକୃତି,
ବିଳସ ମଥୁରାରେ ସୁଖ ସ୍ୱଚ୍ଛନ୍ଦେ
ଭୁଲାଇ ମନ ତୁମ୍ଭ କି କୂଟ ଛନ୍ଦେ ।
ପୂର୍ବ ସୁକୃତି କ୍ଷୟ ଭଜିଲା ପରା .
ତେଣୁ ସଖୀ ଆମ୍ଭର ହେଲା ସରଳା,
ନ ଜାଣେ କୂଟଛନ୍ଦ ତେଣୁ ବଲ୍ଲଭ-
ହୃଦୟ ରାଜ୍ୟେ ତାର ସ୍ଥାନ ଦୁର୍ଲ୍ଲଭ ।
ଶୁଣିଲେ କାହ୍ନୁଁ କେବେ ବେଣୁ ନିନାଦ
ସହସା ଦେହବଶେ ଚଢ଼େ ଉନ୍ମାଦ;
ଭୂତଳେ ପଡ଼େ ସଖୀ ସଦା ବିହ୍ୱଳା,
ଧୂଳି ଧୂସର ତନୁ କ୍ଷଣେ ମଳିନା ।
ଆଶଙ୍କା ହୁଏ ହେଲା ଭୂତ ବିକାର,
ଅଥବା ଘଟିଲା କି ମୂର୍ଚ୍ଛାଧିକାର,
ଦଂଶନ କଲା ଅବା କ୍ରୂର ଭୁଜଙ୍ଗ
ଚମ୍ପକଗୋରି ତନୁ କ୍ଷଣେ ବିଭଙ୍ଗ ।

ଆହେ ଜଗତ ନେତ୍ରା-    ନନ୍ଦ ପସରା,
ମନନନ୍ଦନକାରୀ    ମୁରଲୀଧର !
ଭୁଲି ରହିଲ ସୁଖେ    ଯାଇଁ ମଥୁରା,
ନ ପାଇ ତୁମ୍ଭ ବାର୍ତ୍ତା    ରାଧା ବିଧୁରା ।
ଅମଙ୍ଗଳ ପିଶାଚ    ସୁଯୋଗ ପାଇ
ନାଚେ ଚଉକୁହରେ    ଭୟ ଦେଖାଇ ।
ତୁମ୍ଭ ଦର୍ଶନେ ସଖୀ    ଭକତଭରେ
ନିରଜଇ ଶଇଳ-    ସୁତା ପଦ୍ମରେ,
ଜପଇ ସିଦ୍ଧଯୋଗୀ,    ଭଜେ ମାନ୍ତ୍ରିକ
ସେବଇ ଜାଙ୍ଗଳିକ    ପୂଜେ ଗୁଣିକ ।
ଚ୍ୟୁତ ଧଇର୍ଯ୍ୟ ତାର    ବୁଦ୍ଧି ଚପଳା!
ଛାଡ଼ିଛି ସବୁ ଆଶା    ଦୁଃଖ ବିକଳା ।
ଭଜେ ଭୁଜଗ-ରିପୁ-    ପଦ ବାନ୍ଧବ
କାମଅରି ଶିବ    ଗଉରୀ ଧବ
ଘନ ଚନ୍ଦନ ତନୁ,    ଚନ୍ଦ୍ରମଣ୍ଡଳି
ତୁମ୍ଭ ବିରହେ ଆମ୍ଭ    ସଖୀ ବାଉଳୀ ।
ଭୃଙ୍ଗ ତମାଳ ଡାଳ    ରଚେ ତାହାର
ଲେଖଇ ରୂପ ତବ    ରାସବିହାର !
କାମ କାର୍ମୁକ ଜିଣି    ଗୁରୁ ଭ୍ରୂଭଙ୍ଗ,
ତ୍ରିଭଙ୍ଗେ ଛନ୍ଦି କରେ    ସାଜେ ଶାରଙ୍ଗ;

ଲମ୍ବାଇ ଗଳେ ଭୁଜ- ବଲ୍ଲରୀ ତାର
ଜଡ଼ମ ଜବିଡ଼ାଙ୍ଗୀ ଲୋଟେ ଧରାର ।
କେବେ ବା ପୂର୍ବସ୍ମୃତି ପ୍ରମୋଦଭରେ
କଲ୍ପଇ ବସି ତୁମ୍ଭ ଛନ୍ଦ ମନରେ
ବିରହେ ରଚି ନାନା କଳ୍ପନା ରାଧା,
କ୍ଷଣେ ନିବର୍ତ୍ତେ ନାହିଁ ଦୁଃସାଧ୍ୟ ବାଧା ।
କୃପା ସାଗର ଦୟା ଛପିଲା କାହିଁ ?
ସନ୍ତାପ ପାରାବାରେ ଦେଲ ପକାଇ ।
ପ୍ରାଣ ହେଲାଣି ଆସି ଯିବା ପଥରେ
ତଥାପି ସ୍ମୃତି ଜାଗେ ହୃଦ-ପଥରେ;
ଅନୁଚିନ୍ତାରେ କ୍ଷୀଣା ସାଧ୍ୱୀ ରାଧିକା,
ଭାଙ୍ଗି ପଡୁଛି ତାର ଆଶା ଲତିକା ।
ଯୋଗୀ ସମ୍ମୁଖେ ବିଶ୍ୱ- ରାଜ ! ବିରାଜ
ଶୁଣି ସାଜଇ ସଖୀ ସମାଧି ସାଜ,
ନିବସ ସଦା ଯମୀ ନେନ୍ଦ ପଦଙ୍କୀ
ଆଚରଇ ସଂଯମ ତେଣୁ ବଲ୍ଲଭୀ ।
ମୁକୁନ୍ଦ ବ୍ରଜାନନ୍ଦ ନନ୍ଦନନ୍ଦନ
ହରି ମୁରାରି ଇନ୍ଦୀ- ବର ଲୋଚନ
ହରବଲ୍ଲଭ ବୃନ୍ଦା- ବନ ମଦନ
ବୋଲି କାନ୍ଦେ କନ୍ଦାଇ ସେ ପରିଜନ ।

ବିରହ ଦାବ-ବହ୍ନି  ତନୁ କାଞ୍ଚନ
ରଙ୍କ ଆକାରେ ଘେରି  କରେ ଦହନ;
ମାରି ମାରଇ ବାଣ  ଠାଣି ଶିଞ୍ଜିନୀ
ଆକୁଳେ ଛଟପଟ  ପ୍ରାଣ ହରିଣୀ;
ଧନକୁ ଧନ ତନୁ-  ବନ ସଙ୍କୀର୍ଣ୍ଣ
କୁସୁମ ଶରଘାତେ  ଜୀବନ କ୍ଷୀଣ,
ଜୀବନ କୁରଙ୍ଗମ  ଯିବ ବାହାରି
ଅଚିରେ ବିପିନରୁ  ବ୍ରଜବିହାରୀ ।
ଦୁଗ୍ଧଧବଳତନୁ  ଚନ୍ଦ୍ରଶେଖର
ଭଜନ୍ତେ ଭକତରେ  ସଖୀ ଆମ୍ଭର
ପ୍ରାଣ ନେବାକୁ ସ୍ମର  ଲଗାଏ ହଟ,
ଭବବିନୋଦ ତୁମ୍ଭେ  ଦେଖୁଛ ନଟ ।
ମାରମାରଣ କଷ୍ଟ  ନ ଧଏ ଯେତେ
କୁତୁକ ଏକା ତୁମ୍ଭ  ବାଧୁଛି ତେତେ ।
ତୁମ୍ଭଙ୍କୁ ଗୋପୀହୃଦ  ନୁହେ ଅଜଣା
କମ୍ପାଇ ମାୟାଧର  କର ଛଳନା ?
ତତ୍ତ୍ୱମସି ଉଦ୍ଧବ  କେତେ ବଖାଣେ
ଏ କାନେ ପଶି ତାହା  ଯାଏ ସେ କାନେ ।
କେବଳ ରାଧାଶୋକ  ବଢେ ଦିଗୁଣ
ମନକୁ କାହିଁ ରୁଚେ  ଭବ ନିର୍ଗୁଣ ।

ସର୍ବଜ୍ଞପଣେ ଦେବ- ଗୁରୁ ସମାନ
ଗାନ୍ଦିନୀସୁତ ଯଦୁ- କୁଳ ପ୍ରଧାନ
ସଚିବପଦେ ବୃଷ୍ଣି- ବଂଶେ ପ୍ରଥିତ,
ତାଙ୍କୁ ବା କେଉଁକଥା ନାହିଁ ବିଦିତ ?
ସଖୀ କଳିନ୍ଦକନ୍ୟା ଯମ ଭଗିନୀ
ବିଷାଦଶୀତେ ଆମ୍ଭ କଳନାଦିନୀ
ଦିନଯାମିନୀ ଦୁଃଖେ ଲହରୀ ଛଳେ
ପିଟଇ ଶିର ସଦା ଚରଣ ତଳେ ।
ଏହାଙ୍କ ଠାରୁ ବଳି ସୁପରିଚିତ
ପାଇବୁ କାହିଁ ଆଉ ଗୋପୀଦୟିତ !
ସଖୀ ଦୁର୍ଦ୍ଦଶା ଯାଇଁ ଯେ ମଧୁପୁରେ
ବିନମ୍ରେ ଜଣାଇବ ତୁମ୍ଭ ଛାମୁରେ ।
ବିରହ ତାପ କୀଟ କାଟେ ଅନ୍ତର,
ମଉଳି ପଡ଼େ ତଳେ କୁସୁମଦଳ ।
ଉତ୍କଳିକାତରଙ୍ଗ- ଦୋଳାରେ ଦୋଳି
ରାଧା କୁମୁଦ ହୁଏ କ୍ଷୋଭେ ଆନ୍ଦୋଳି ।
ନାହିଁ ଆମୋଦ ନାହିଁ ପୂର୍ବ ସରାଗ,
ଆଳି-ଅଳି କୁତୁକ ଭଜେ ବିରାଗ ।
ଗୋକୁଳଚନ୍ଦ୍ର ଦିଅ ପାଦ ପରଶ
ରାଧା-ହୃଦ-କୁମୁଦ ଫୁଟୁ ସରସ ।

ମିଳନ-ଆଶା ପୋଷି ସଖୀ ଆମ୍ଭର
ରଖିଛି କଷ୍ଟେ ଜୀବ ଧଇର୍ଯ୍ୟ ଧର ।
ହତାଶ ନୟନରେ ସଖୀ ଆକୁଳେ
ଅନାଇ ରହିଥିବ ଚୂତ ମୁକୁଳେ ।
ଅଙ୍କିତ ହେଲେ କଣ୍ଠ- ଧ୍ୱନ ସମ୍ମିତ
ପଢ଼ିବ ସହଚରୀ ଶିରେ ବିପତ୍ତି ।
କାମଚିତା ଜାଳିବ ରାଧା ହୃଦୟ,
ବାହାରି ଯିବ ପ୍ରାଣ ଯମ ନିଳୟ ।
ଲୋଡ଼ଇ ସଖୀ ଯେବେ କି ପ୍ରତିକାର
କରନ୍ତେ ସଖୀକୁଳ ନିବାର ତାର
ଉଇଁ ଆରମ୍ଭେ ସେତ ଲେପ ଭଜଇ;
ନୋହିଲେ ଜୀବନରେ ନ ଥାନ୍ତା ସନ୍ଧି ।
ଦିଅନ୍ତୁ ଆଶ୍ୱାସନା ସଖୀ ସକଳ-
ପାଇବୁ କାନ୍ତ, ରାଧେ, ନୁହ ବିକଳ ।
ଲଭି ଏ ଆଶା ନୀଳୋ- ତ୍ପଳନୟନା
ବଞ୍ଚିଛି ଦୁଃଖେ ସହି ସ୍ମର ଯାତନା ।
ରାସକ୍ରୀଡ଼ାରସିକ ! ନିତ୍ୟ ନୂତନ
ପ୍ରେମ ଲହରୀ ରଚି ଭବ-ଗହନା
ମଦନତରୀ ଛାଡ଼ି ପ୍ରୀତି ସାଗରେ
ରାଧିକା ସଙ୍ଗେ ଖେଳୁ- ଥିଲ ଗୃପରେ ।

ପାସୋରିଦେଲ ଏବେ   ନାହିଁ ସେ ଭାବ,
ଦାରୁଣ ନିରପେକ୍ଷ   ହେଲ ମାଧବ !
ଧିକ ସଖୀଙ୍କୁ ମୋର   ଭୁଲା କମ୍ପନ
ସୂଚଇ ଯେଣୁ ନାସା-   ଅଗ୍ରେ ଜୀବନ ।
ଅଚିନ୍ତ୍ୟନୀୟ ଯେତେ   ଭାବ ବିକାର
ପ୍ରକାଶେ ରାଧା ମୁଗ୍ଧା   ମାନବ ସ୍ଥିର
ବର୍ଣ୍ଣି ପାରିବ ତାହା   ନୁହେ ସମ୍ଭବ,
ଅବଳା ମୁହିଁ କାହିଁ   ବାଣୀ ବିଭବ ।
ବିଳପେ ଉତ୍କଣ୍ଠାରେ   ଯେତେ କଲ୍ୟାଣୀ
ସଂକ୍ଷେପେ କହେ ତାହା   ମୁରଳୀପାଣି ।
ଦିବ୍ୟ ଅବଧାନରେ   ଦେଇ ଶ୍ରବଣ
ଶୁଣ ଜୀବିତନାଥ !   ମୋ ନିବେଦନ,
ସ୍ମର ପୂରୁବ କଥା   ଅତି ଦୁଃଖିତା ·
କହନ୍ତି ରାଧା ଶୁଣ   ଆଗୋ ଲଳିତା—
ମୋଠାରେ ଯେଉଁ ସ୍ନେହ   ରଖିଲେ ହରି
ନ ପାରିଲି ଶୁଝି ମୁଁ   ଧର୍ମ୍ମକୁ ଡରି ।
ଧର୍ମ୍ମ ଅଧର୍ମ୍ମ ଆଦି   ବିଚାର ନାହିଁ,
ସତତ ବଢ଼େ ଦୁଇ-   ତଟକୁ ଖାଇ ।
କୃଷ୍ଣ ପୂର୍ବ ପୀରତି   କଲେ ସ୍ମରଣ
ଲଜ୍ଜିତା ରଖିବାକୁ   କ୍ଷଣେ ଜୀବନ ।

ଏହି ଯେ ଲତାକୁଞ୍ଜ    ପୂରୁବେ ଦେଖି
କେତେ ଆନନ୍ଦ ହୁଏ    ନ ପାରେ ଲେଖି ।
ତରୁରାଜି ଏହି ଯେ    ସଜେ ଆଗରେ
ଦେଖିଲେ ପ୍ରମୋଦ କି    ହୃଦୟେ ଧରେ ?
ଦେଖୁଛି ସବୁ ଆଜ    ନାହିଁ ଆହ୍ଲାଦ,
ଯେଣେ ଚାହୁଁଛି ତେଣେ    ଦେଖେ ବିଷାଦ ।
ଲଭିଲେ ସ୍ୱାମିଠାରୁ    ଅଣ- ଆଦର
ନ ପୋଡ଼ଇ ଜଗତେ    କାହା ଅନ୍ତର ?
ଧରି କପଟ ବେଶ    ନନ୍ଦ ନନ୍ଦନେ
ଗିରି ଗହ୍ୱରେ ପଡ଼ି    ଭୂମି ଶୟନେ
ଆଳିଙ୍କ ମେଳେ ଯେବେ    ମୁଁ ରହି ଥାଇ
ହୁଅନ୍ତି ନନ୍ଦଗୃହେ    କେତେ ଗେହ୍ଲାଇ ।
ପ୍ରଣୟ ପ୍ରାର୍ଥୀ କାହ୍ନୁ    ଶଠ କପଟ
ଭିଡ଼ନ୍ତି ବକ୍ଷେ ମୋତେ    କରି ଆକଟ ।
ନାହିଁ ସେ କାଳ ଆଉ    ବହି ଗଲଣି
କହିବି ତୋ ଆଗେ ମୁଁ    କସ କଲ୍ୟାଣି !
ଶୁଣି ଯାହାଙ୍କ ମଧୁ-    ବଂଶୀ କାକଳି
ମଦନ ମଦରାଷୀ    ପ୍ରେମେ ତରଳି
ରହି ନ ପାରି କ୍ଷଣେ    ନିଜ ସଦନେ
ଯାଆନ୍ତି ଚଳି ବେଗେ    କୁଞ୍ଜକାନନେ;

ଦେଖି ଯାହାଙ୍କ ଗୁରୁ- ଭୁରୁ ଭଙ୍ଗିମା
ସରଇ କୁଳବଧୂ- ବ୍ରତଗରିମା
ପ୍ରୀତିପସରା ସେହି ଗୋପୀରମଣେ
ଦେଖିବ ଆଉ କେବେ ପାପନୟନେ ?
ଫୁଲରୁ ଫୁଲେ ଯହିଁ ଅଳି ଗୁଞ୍ଜରି
ପିଅଇ ମକରନ୍ଦ ମାନସଭରି,
ଶରଦାଗମେ ଯହିଁ ଚନ୍ଦ୍ରକିରଣ –
ଲହରି ଖେଳେ ତେଣୁ ଦିଶେ ମୋହନ
ସେ ବନ ପ୍ରଦେଶରେ ଆଉ କି ସତେ
ଯେବେ ପ୍ରେମଉଚ୍ଛି- କାମ ସଙ୍ଗତେ
ଥିବେ ପ୍ରାଣବଲ୍ଲଭ କଲହେ ମାତି
ରଣମଦ ପ୍ରକର୍ଷେ ଫୁଲାଇ ଛାତି
ନିବଡ଼ଭୁଜବନ୍ଧେ ଦେଇ ଶାଙ୍କୁଳି
କରିବ ତାଙ୍କୁ କାମ- କ୍ରୀଡ଼ା ପିଭୁଲି ।
ହା କଷ୍ଟ ହୃଦଙ୍ଗଲେ ଯିବ ବା କାହିଁ ?
କିସ କରିବ ବୁଦ୍ଧି ଦିଶଇ ନାହିଁ ।
ବିରହ ପାରାବାର ପାର ଅବାର,
ବୁଡ଼ି ମରିବା ଆସି ହେଲାଣି ସାର ।
ବନ୍ଧୁଛି ଶିରେ ସଖି, କହ କେସନେ
ପ୍ରାଣ ଲଭିବ ହେଲେ ବିନୋଦ ଷଣେ ।

ଛାଡ଼ିଣ ଗଲେ ମୋତେ ଯଦ୍ଧ କଣ୍ଠାଇ
ନ ଛାଡ଼ଇ ସ୍ୱଚ୍ଛନ୍ଦେ ଯମ କମ୍ପାଇ ?
ବୃନ୍ଦାବନ୍ଦିନେ ଆସି ସ୍ୱପନଛଳେ
ଦେହ ନ ସହେ ହରି ରମନ୍ତି ବଳେ ।
ବାଧୁଛି ସଖୀ ମୋତେ ତାଙ୍କ ଅସତ୍ୟ,
ଯାଅ ସ୍ୱଚ୍ଛନ୍ଦେ ମଧୁ- ପୁରୀ ଝଟିତ
କରି ବାରଣ ଯେହ୍ନେ ଆଜ ସ୍ୱପନେ
ମଦନ ଆବେଶରେ ବୃନ୍ଦାବନନେ
ନ ଖସାନ୍ତି ମୋହର କିଙ୍କିଣିଗୁଣ
ବଂଶୀଧର ଚପଳ ଶାଠ୍ୟନିପୁଣ ।
ଉଡ଼ାଇ ଦେଇ କହ ମାନସଭ୍ରମ
ଅବିଶ୍ୱାସ ନ କର ସ୍ୱପ୍ନ ସଙ୍ଗମ ।
ଶୁଣ ପ୍ରତ୍ୟକ୍ଷ ଦୂରେ ଥାଉ ସ୍ୱପନ
ଯାହା କଲେ ବୟସ୍ୟ ଗୋପୀମୋହନ
ଗୋବର୍ଦ୍ଧନ ବଦିନେ ଆସି ସହସା
ସ୍ମରକଳହେ ମାତି ଦେଲେ କି ଦଶା ।
ପ୍ରୀତିବସନେ ମୁହିଁ ଯାଏ ପଳାଇ
କୃଷ୍ଣକୁତୁକୀ ପଛେ ଥାନ୍ତି ଗୋଡ଼ାଇ ।
ଚକିତ ପଦକ୍ଷେପେ ବାଜେଣିବଳା
ବାଜେ ମୋ ଦ୍ୱିଗୁଣରେ ଚଳ ଚପଳା ।

ବାଙ୍କ ଗୃହିଁଣୀ ତାଙ୍କ    ହର୍ଷେ ତରଳ
ଗହନବନେ ପଥ    ବାରେ ଚଞ୍ଚଳ ।
ମୋହନବଂଶୀ କର-    କମଳୁଁ ତଳେ
ପଡ଼ଇ ଖସି ନାହିଁ    ଚେତା ଚଉରେ ।
ପୁଷ୍ପସ୍ମିତ ଶବଳା    ବନବଲ୍ଲରୀ
ନୂତନ ଚେଳ କାଞ୍ଚ-    ପଣତ ଧରି
ରଖନ୍ତେ ଅଟକାଇ    ନ ପାରେ ଚଳି
ନୟନୁଁ ଅଶ୍ରୁ ଦୁଃଖେ    ପଡ଼ଇ ଝରି ।
ରହନ୍ତେ ଫୁଲାଇ ମୁଁ    ମୋର ବଦନ
ପରିହାସ ଆରମ୍ଭି    ନନ୍ଦନନ୍ଦନ
ପ୍ରେମରାଗ ଉଜ୍ଜ୍ୱଳ-    ବିମ୍ବ ଅଧରେ
ଦିଅନ୍ତି ଚୁମ୍ବ କେତେ    ମୋ ଗଣ୍ଡସ୍ଥଳେ ।
କେଶପାଶେ ଲୁଚାଇ-    ଥିଲି ମୁରଲୀ
ହେଲି ଚଞ୍ଚଳା ତା କାଳେ    ଦେଖିବେ ହରି ।
କପଟରାଗ ଧରି    ଭୁରୁ ନଚାଇ
ଚେଷ୍ଟା କଲି କେସନେ    ଯିବି ପଳାଇ ।
ଗୋପମଣ୍ଡଳେ ଖ୍ୟାତ    ଲବଣୀଚୋର
ଫାଙ୍କି ନ ପାରେ ତାଙ୍କୁ    କପଟଚୋର ।
ଗିରିଗହ୍ୱରେ ମୋତେ    କେଶ ଆକର୍ଷି
ଓଟାରିନେଲେ କୃଷ୍ଣ    ବଳ ପ୍ରକର୍ଷି ।

ଘନେ ବାସନ୍ତୀଲତା-   କୁଞ୍ଜଭିତରେ
ବସିଛି ଏକାକିନୀ   ମନଦୁଃଖରେ
ପଛରୁ କାହ୍ନୁଁ ଆସି   ନାଗରବର
ବୁଜି ଧଇଲେ ହସି   ନେତ୍ରଯୁଗଳ ।
କୋପି ଈଷତ ତାଙ୍କ   କରଅଙ୍ଗୁଳି
ଧରନ୍ତେ ଝାଣି ସଖି,   ଯେହ୍ନେ ବିଜୁଳି
ଛୁଟିଲେ ଖରବେଗେ   କାହ୍ନିଁ ଲମ୍ପଟି
ଜଣା ନ ଗଲା ସେତ   ବଡ଼ କପଟୀ ।
ଥାଉ ଅତୀତ କଥା   ଦେଖ ସରଳେ
ରସସାଗର ହରି   ଉଭା ଆଗରେ ।
ସ୍ମିତ ମାଧୁର୍ଯ୍ୟ ଫୁଲ୍ଲ   ଚନ୍ଦ୍ରବଦନ,
ଭୁଜଯୁଗଳ ସ୍ତମ୍ଭ   ଜିଣି ଶୋଭନ ।
ଲଭିବେ ଆଲିଙ୍ଗନ   ଅଭିଳଷିତ
ତେଣୁ ମନରେ ହୋଇ   ସେ ଉଲ୍ଲସିତ
ଫିଙ୍ଗନ୍ତି ଇଙ୍ଗିତରେ   ବନ୍ଧୁକଫୁଲ,
ହେବ ଗୃଭୁର୍ଯ୍ୟ ତାଙ୍କ   କେ ସମତୁଲ ?
ଉଠ ଗୋ ବ୍ରୀଡ଼ାବତି   ସଖି ଲଳିତେ
ମୁକୁତାହାରେ ବାନ୍ଧ   ପରାଣମିତେ ।
ନ ଯାନ୍ତୁ ମଧୁମୁଖି   ଆଉ ଯେପରି
ଶଠ କପଟ ଚଉ-   ର୍ଯ୍ୟେର ଆମ୍ଭର ।

ନାଗରମଣି ତୁମ୍ଭ ପ୍ରେମ ବିକାରେ
ପ୍ରଳାପେ କେତେ ରାଧା ଏହି ପ୍ରକାରେ ।
ଆଳି ନ ଆଳି ଦେଖି ତାର ଉନ୍ମାଦ
କାନ୍ଦନ୍ତି କେତେ ଚିତ୍ତେ ଭଜି ବିଷାଦ ।
ହା ମନ୍ଦବୁଦ୍ଧି ମୁହିଁ ମାନ ରଚନା
ନ ଭାବି ତଳେ ମାନି ଭାବି ଭାବନା
ସରଳା ରାଧାକୁ ମୁଁ କି ଭବ୍ୟପଣେ
ଶିଖାଇଲି ଆବାଲ୍ୟୁଁ ଅତି ଯତନେ ।
ଗୋପ କାମିନୀ ମନ- ମୀନ ଜଳଧି !
ଲୁବ୍ଧା ରାଧା ବିଧୁରା ସେହି ଅବଧି
ଅମଳ ଭୁଜ ଯୁଗ- ପର ରମ୍ଭଣ
ଲଭିଲା ନାହିଁ ତାର ପୂରାଇ ମନ ।
କୁଞ୍ଜ କୁଟୀ ଅଳିନ୍ଦେ ତୁମ୍ଭ ଉତ୍ସଙ୍ଗେ
ଆଉଜି ବସିଥିବ ସଖୀ ବିଭଙ୍ଗେ
ନବମାଳିକେ ମଣ୍ଡି ଚିକୁରୁ ବକୁଳ,
ମଦରଭୟେ ନେନି ଥିବ ମୁକୁଳ,
ପୂତତୋୟ କାଳିନ୍ଦୀ- ହ୍ରଦକମଳ-
ବାସେ ସମୀର ବହୁ- ଥିବ ଶୀତଳ,
ସେବିବ କୌଶଳ୍ୟ- ବ୍ୟଜନ ଧରି
କେବେ ଏ ଭାଗ୍ୟ ଆଉ ହେବ ମୋହରି ?

ବୃନ୍ଦାବନେ ଶାରଦ-　　ଜ୍ୟୋଛ୍ନା ବିଳାସେ
ସଙ୍ଗତେ ଥିବ ରାଧା　　କୁଞ୍ଜେ ଉଲ୍ଲାସେ,
ଅବନୀ ଲୋଟୁଥିବ　　ଫିଟି କବରୀ
କୁସୁମ ଖସୁଥିବ　　ତାରକାଭଳି
କାନ୍ଧରେ ପଡ଼ିଥିବ　　ଭୁଜବଲ୍ଲରୀ
ଆନନ୍ଦେ ନାଚୁଥିବ　　ପ୍ରେମ ଲହରୀ
ଏରୂପେ ଦେଖି କେବେ　　ସଖୀ ସୁମୁଖୀ
ହେବି ମୁଁ ପରାଣରେ　　ଏକାନ୍ତେ ସୁଖୀ ।
କୁଞ୍ଜରେ ଥିବା ଜାଣି　　ଗୋପୀରମଣ
ସଙ୍କେତ ସ୍ଥାନେ ହେବା-　　ପାଇଁ ମିଳନ
ପଠାଇଦେବି କହି　　ତୁଳସୀଦଳ
ପାଖରେ ଥିରେ ରାଧା　　ସଂଗ୍ରହ କର ।
ଫୁଲଚନ୍ଦନବ୍ୟାଜେ　　ଦୂରକୁ ଯିବି
ଏହି ସୁଯୋଗ ଆଉ　　କେବେ ଲଭିବି ।
ହଂସୀରମଣ ଗୋପ-　　ଦୁଃଖ କାହାଣୀ
କଂସାରିଙ୍କ ପଦ୍ମରେ　　ଠିକେ ବଖାଣି
ସେବକ ମଧ୍ୟେ ହେବୁ　　ତୁ ପ୍ରିୟପାତ୍ର
ଲଭି ଶ୍ରୀହରି କୃପା-　　କଣିକେ ମାତ୍ର ।
ମରାଳୀବନ୍ଧୁ ମୋର　　ହରି ଭରସେ
କଣ୍ଠ ଆଲିଙ୍ଗି ବନ-　　ମାଳା ସରସେ

ବସିଜୁଥିବ, ଆଗେ ପୁଛି କୁଶଳ !
କହିବୁ ପରେ ମୋହ- କଥା ସକଳ;
ସତେ କି ଗୁଣବତୀ ବନମାଳୀକେ
ପାସୋରି ଦେଲା, ହରି- ଣାକ୍ଷୀ ରାଧିକେ ?
ଏକଦା ଗୋବର୍ଦ୍ଧନ- ଗିରି ନିତମ୍ବେ
ତୋ ସଙ୍ଗେ ଦେଖି ଯୁକ୍ତ ନନ୍ଦ ସମ୍ଭବେ
ସଖୀ ଖଣ୍ଡିତା ଜଳି ଈର୍ଷା ଅନଳେ
ନିକ୍ଷେପି ତୋତେ ଦୃଢ଼ ମୁଷ୍ଟି କବଳେ
ପ୍ରକର୍ଷେ ଆକର୍ଷିଲା ବନମାଳୀଙ୍କି,
ଶିଖଣ୍ଡଖଣ୍ଡ ଖସି ଚୁମ୍ବେ ଧୂଳିକି ।
ଏତ ଅଳପଦିନ- ତଳ ଘଟନ,
ସେ କଥା ରସିକେ କି ନାହିଁ ସ୍ମରଣ ?
ଶ୍ରୁତ ମକର ମୁଦ୍ରେ . ମୁଦେ ସମ୍ଭାଷି
ଭଣିବୁ ମୋ କାକୁତି ହଂସୀବଳାହି !
ମକରମୁଦ୍ରେ ଗୁରୁ- ସ୍ମେର ଆନନେ,
ଶ୍ରୀକାନ୍ତ ଗଣ୍ଡଚୁମ୍ବ- କଳାରଚନେ,
ଯଦୁପତି ଅପାଙ୍ଗ- କ୍ରୀଡ଼ା ରସିକେ,
ସଂସାରେ ଭାଗ୍ୟବତୀ ତୋହ ସରି କେ ?
କୁଶଳ ପୁଚ୍ଛିବାରେ କି ପ୍ରୟୋଜନ
ମଙ୍ଗଳମସ୍ତୁ ଅଙ୍ଗେ ଯେଣୁ ତୁ ଲଗ୍ନ ।

ଶ୍ରୀପତି ଭ୍ରୂଲତା ତୋହ ନିବାସ
ତେଣୁ ଶରଣ ଲୋଡ଼େ ତୋହ ସକାଶ ।
ବୃଷ୍ଣିବଂଶ ପରୋକ୍ଷେ ଅତି ଗୋପନେ
କହିବୁ ରାଧା ଦୁଃଖ କୃଷ୍ଣ ଶ୍ରବଣେ
ଜଣାଇ ବନସ୍ଥରେ ପ୍ରେମାଲିଙ୍ଗନ
କଉସ୍ତୁଭମଣିକି ମୋ ନିବେଦନ ।
ଭୂଷିବୁ ବଚନରେ ପକ୍ଷିରାଜନ,
ଏ କି ଅଦ୍ଭୁତ ତୋର ମଣିରତନ
ଶ୍ରୀକାନ୍ତ ବକ୍ଷେ ତୋର ସଦା ଦୋଳନ
ପାସୋରି ଦେଲୁ ରାଧା ଯେଣୁ ବହନ ।
ଅଭ୍ୟୁଦୟ ଉଦୟେ ଚପଳମତି
ରଖିଛି କେବେ କାର ପୂର୍ବ ପୀରତି ?
କଟିକିଙ୍କିଣି କଣି କଣି ବାଜିବ,
ମଣିବଳୟ ରଣ- ଝଣ ନାଦିବ,
ପାଦ ମଞ୍ଜୀର ରୁଣୁ ଝୁଣୁ କ୍ୱଣିବ,
ସପତସ୍ୱରେ ବଂଶୀ ମନ ମୋହିବ,
ତା ସଙ୍ଗେ କଳକଣ୍ଠୀ କଣ୍ଠ ମିଳାଇ
ଗାଉଥିବେ ସଙ୍ଗୀତ ତାନ ପୂରାଇ
କାଳିନ୍ଦୀ ପୁଳିନେ ଏ ରାସ ବିଳାସ
କେବେ ବା ଆଉ ହେବ ନାହିଁ ବିଶ୍ୱାସ,

ଜାଣିଛୁ ମଣି ଯଦି    କହି ଫିଟାଇ
ନୋହିଲେ ସଖୀ ପ୍ରାଣେ    ଭରସା ନାହିଁ ।
କମ୍ବୁ ତୁ କୃଷ୍ଣକରେ    ରାଜୁ ନୂତନ
ଗୋପରମଣୀ ଖ୍ୟାତ    ତୋତେ ଗୋପନ,
କମ୍ବୁକଣ୍ଠୀ ରାଧିକା-    ଗୁଣ ଗରିମା
ରେ ପାଞ୍ଚଜନ୍ୟ ତୋତେ    ଅଜଣା ସିନା ।
ଜଣାଏ ତଥାପି ମୋ    ଅଭିଳଷିତ
ସୁଜନ ଯେଣୁ ପର    ଦୁଃଖେ ଦୁଃଖିତ ।
ଜଳଧି-ହୃଦାନନ୍ଦ    କମ୍ବୁ ପ୍ରବର
ଲଭିଣ ଶ୍ରୀ ଗୋବିନ୍ଦ-    କରକମଳ
ବୃନ୍ଦାବିପିନେ ବହି    ମନେ ଉଲ୍ଲାସ
ପଶୁପଯୋଷାମେଳେ    କର ବିଳାସ,
ଯାହାଙ୍କ ଗୋଷ୍ଠପ୍ରିୟ    ଯଦି ପଚ୍ଚରୁ
ମୁରଲୀ ମଞ୍ଜୁସ୍ୱନେ    ସେତ ସୁଗୃରୁ,
ବେଣୁଧର ଚରଣ-    ରଜେ ସୁଭଗ
ନିତ୍ୟ ପ୍ରମୋଦୀ ତହିଁ    କୀଟ ପତଙ୍ଗ ।
ଗୃଣିର ନିସୂଦନ    ପ୍ରେମନିଧାନ
କୃଷ୍ଣ ଛାମୁରେ ଆମ୍ଭ    ଦୁଃଖ ଏମାନ
ନିବେଦି ସବିନୟେ    ପ୍ରିୟ ମରାଳ
ତୋଷିବୁ ଥିବେ ତହିଁ    ଯେ ପରିବାର ।

କୋପ-ପ୍ରକଟ-ପ୍ରେମ- ଚଟୁଳ ହରି
ରଚନ୍ତି କେତେ ରଙ୍ଗେ ଲୀଳାଲହରୀ ।
ଶୁଣାଇବୁ ତାହାଙ୍କୁ ଦଶାବତାର-
ରହସ୍ୟ ଯାହା ସଖୀ କଲେ ପ୍ରଚାର ।
ମୀନାବତାର ହରି ! ମୀନନୟନା
ରାଧା ସନ୍ତାପ କିଏ କରେ କଳନା ?
ରସ ପ୍ରବାହେ ସଖୀ ଚିତ୍ତ ବଡ଼ିଶି
ପକାଇଥିଲା ଗୁନ୍ଥି ପ୍ରେମଆମିଷ ।
ଧରିବ ବୋଲି ତୁମ୍ଭ ମନରୋହିତ,
ଆଶାଲତିକା ମୂଳ ହେଲା କର୍ତ୍ତିତ ।
ଛିଣ୍ଡାଇ ଦେଲ ତାର ବିବେକ ଗୁଣ,
ଗ୍ରାସିଲ ବଡ଼ିଶିତା ଶଠ ନିପୁଣ ।
ମୂର୍ତ୍ତି ବିଳାସ ଦେଖି ସଖୀ ବରାକୀ-
ଚିତ୍ତ ରୂପ ଲାବଣ୍ୟ ରହିଲା ଲାଖି,
କଠିନ ମୂର୍ତ୍ତି ହେଲ ତେଜି ସୁକାନ୍ତି,
ବହିଲ ତୁମ୍ଭ କୂର୍ମ- ମୂରତି ଖ୍ୟାତି ।
କଂସାରି ଏ ଅବଧି ଖେଳେ ତୁମ୍ଭର
ବରାହରୂପେ ସାନ୍ଦ୍ର ପ୍ରେମଲହରୀ;
ଚନ୍ଦନକଳେବରା ଧରାରମଣୀ
କୋଳେ ଧରିଛ ଭୋଳେ ନାଗରମଣି ।

ତୁମ୍ଭ ଅନ୍ତରେ ନର- ହରି ମୂରତି
ରହିଛି ସଦା ଲଗ୍ନ ଜଗତପତି ।
ନାରସିଂହ ସ୍ୱଭାବ କେତେକାଳରୁ
ପାସୋରି ଗଲା ନାହିଁ ତୁମ୍ଭ ମନରୁ ।
ଅକ୍ରୂର ଚରିଗତ ହେଲା ହୃଦୟ,
ପ୍ରହ୍ଲାଦ. ବନୀତ, ତେଣୁ ଅଥୟ
ହେଲେ ଗୋପକାମିନୀ ଭଜି ବିଷାଦ
ଯଥା ଅସୁରକୁଳ ଗଣି ପ୍ରମାଦ ।
ବନ୍ଦୀ ଗରବ ଚରେ ଆହେ ବାମନ !
କରନ୍ତେ ବଳୀ ଗୁରୁ- ବାକ୍ୟ ଲଂଘନ
ଅତଳତଳେ ତାଙ୍କୁ ଗୃହିଲ ବଳେ
ତ୍ରିପାଦଭୂମି ମାଗି କଳ କୌଶଳେ ।
ଅବଜ୍ଞା କରି ସଖୀ ଗୁରୁଗୌରବ
ରଚିଲା ତୁମ୍ଭ ସଙ୍ଗେ ପ୍ରେମ ତାଣ୍ଡବ,
ଭୁଞ୍ଜିଲା ପ୍ରତିଫଳ, ସହିଲା ଶେଲ
ବ୍ୟସନ ପାଶେ ବାନ୍ଧି ଫୋପାଡ଼ି ଦେଲ ।
ଝୁରି ରାଧିକା ଇଚ୍ଛେ ଭୃଗୁ ପତନ
କରିବ ବୋଲି ତାର ତନୁ ପାତନ
ଯେଣୁ ତା ପ୍ରତି ନାଥ ତୁମ୍ଭ ବିଧାନ
କଠିନ ହେଲା ଭୃଗୁ- ପତି ସମାନ ।

ରଘୁତିଳକ ! ଗୀବ  ଅତି ଆକୁଳେ
ଆକ୍ରାନ୍ତା ନିରାନନ୍ଦା  ଦୂଷଣ କୁଳେ ।
ଗୋବର୍ଦ୍ଧନ ତଟରେ  ବିଶରେ ଥର,
ବିସ୍ବଧଭୟେ ଘୋଷ-  ପଲ୍ଲୀ ବିକଳ ।
ମାସାଚ ନାରେ ଚଉ-  ଦ୍ବେଗେ ସମ୍ଭ୍ରତ .
ଛାଡ଼ିଣ ଗଲ ଯେଣୁ  ଗୋପବସତି ।
ରାସଉତ୍ସବ ଲାଗି  ଶରଦକାଳ
ଆଗତ ହେଲା ଆସି  ରୋହିଣୀବାଳ !
ଶାରଦାକାଶ କାନ୍ତ  ରାସବିଳାସି,
ଗୋପରମଣୀ ତୁମ୍ଭ  ଶ୍ରୀପଦ ଦାସୀ ।
ନିରପରାଧା ଆମ୍ଭେ  ଲୋଡୁ ଶରଣ
ବୃନ୍ଦାବନେ ନ ଆସ  କମ୍ପା ମୋହନ ?
କାହିଁରେ ସଖୀ ରକ୍ଷି-  ନାହିଁ ଆସକ୍ତି
ଇଷ୍ଟ ସାଧନେ ଯେବେ  ପଡ଼େ ବିପତ୍ତି
ନାହିଁ ତହିଁକି ତାର  ତିଳେ ଶୋଚନା
କରିବ ବାଳା ରାଜ-  ଦ୍ରୋହ ରଚନା ।
ଯାହା ଦେଖୁଛ ତହିଁ  ତାର ବିରକ୍ତି
ପଦରାଜୀବ ଧ୍ୟାନେ  ରଖିଛ ମତି ।
ବୁଦ୍ଧି ସମାନ ସଖୀ  ବଞ୍ଚିଇ ଦିନ
ଦୀନବନ୍ଧୁ କମ୍ପାଇଁ ,  କରୁଣାହୀନ ?

କଲ୍ଲି ଚତୁର ଗୋପ-    ଭୁରଗାରେହ,
ସନ୍ତାପ ମ୍ଲେଚ୍ଛ ହେଲ    ମାନସଦ୍ରୋହୀ,
ସମଦମଧୁପାଳୀ-    ପ୍ରିୟ ଦର୍ଶନା
ଚଞ୍ଚଳନୟନାନ୍ତ-    ପ୍ରୀତିରଚନା-
ଅସି ଲତାରେ ଛେଦ    ମ୍ଲେଚ୍ଛ ନିବହ
ବଢ଼ାଇ ସୁଧୀରାଧା-    ପ୍ରମୋଦଚୟ
ଭୂର ନିବାର. ମହା    କର ଉଚ୍ଛ୍ୱାସ
ନିରାଶ ପରାଣରେ    ଦିଅ ଆଶ୍ୱାସ ।
ପ୍ରେମରଭସେ ଭାବ-    ଭଙ୍ଗି ପ୍ରକାଶି
କାହିଁ ବା ମୃଦୁ କାହିଁ    କଟୁ ସମ୍ଭାଷି
ଲୋଚନଜଳେ ହଂସ    ତିନ୍ତାଇ ଗଣ୍ଡ
ଫିଟାଇ ଆମ୍ଭ ଦୁଃଖ-    ନାଟକଖଣ୍ଡ
ଗୋବିନ୍ଦ ଶ୍ରୀ ଚରଣେ    ଦେଇ ନୟନ
ଅନାଇଥିବୁ କିବା    ପ୍ରତିବଚନ
ହେବ ଶ୍ରୀମୁଖୁଁ ତାହା    ମନେ ପକାଇ
କହିବୁ ଆସି ଆମ୍ଭେ    ବସିଛୁ ଯହିଁ ।
ଲୋକମୁଖୁଁ ଶୁଣିଛୁ    ଡେରି ଶ୍ରବଣ
ଦେଖିବୁ ଏବେ ନେନେ    ନନ୍ଦନନ୍ଦନ;
କାମକାତର ପୁଣି    ଗୋପଯୁବତୀ
ଲଭିବେ ଉପକୃତ    କାଦମ୍ବୀପତି !

ମଧୁପୁରୀକୁ ପଥ    ନୁହେ ଅସର
ଲାଗିବ ତୋତେ ତିନ    ଚାର ପହର
ମନରେ ତେଣୁ ଦ୍ୱିଧା    ନ ଧର ଲବେ
ଗଗନମାର୍ଗେ ସଖା    ଉଡ଼ ହେ ଜବେ ।
ଅପୂର୍ବ ରସରୁଚି    ପ୍ରମୋଦଭରେ
ବିଳସେ କଳହଂସ,    ତୋହ ଅନ୍ତରେ;
କ୍ଷୀରରୁ ନୀର ତେଣୁ    କରୁ ଅନ୍ତର
ଭୁତ ଅଛୁ ଅତୁଳ-    କଳାକୁଶଳ ।
ଯିବାକୁ ମଧୁପୁରୀ    ହେବ ବିଳମ୍ବ
ଚତୁର, ତୋହ ପକ୍ଷେ    ନୁହେ ସମ୍ଭବ ।
ଭକତ ଶିରୋମଣି    ପ୍ରେମବିଳାସୀ
ଭକ୍ତିବତ୍ସଳ ଜନ୍ମା-    ବଧି ସନ୍ୟାସୀ
ଉତ୍ତମବଂଶେ ଜାତ    ଭୁବ ଶ୍ରୀମାନ
ମହୀରେ କିଏ ଶୁକ-    ଦେବ ସମାନ
ରଚବ ଭାଗବତ-    ମଧୁପଟଳ ?
ପିଇବେ ସର୍ବଜନ*    ପ୍ରେମେ ବିହ୍ୱଳ ।
ନିବେଶି ମନ ହରି-    ପଦ୍ମଚରଣେ
ମୁରାର କେଳିକଳା    ଅବଲମ୍ବନେ
କବିତାଛନ୍ଦେ ହଂସ-    ଦୂତ ରଚିତ
ବିନୋଦ ସହୃଦୟ    ରସିକ ଚିତ୍ତ

ଜଗତବନ୍ଧୁ ଶ୍ରୀସ-
ହୃଦୟେ ସ୍ଫୁରୁ ସାନ୍ଦ୍ର
ରସିକ-ହର-
ପ୍ରେମ ଲହରୀ ।

ସମାପ୍ତ ।



Ptd by Nityananda Sahoo A Press Cuttack